# ସମ୍ବର ଦଶମୀ

## ବ୍ରତକଥା

---

ଶ୍ରୀ ଶ୍ୟାମସୁନ୍ଦର ଦେନ୍ତ୍ରାମୃତଙ୍କ ଦ୍ୱାରା ଗଦ୍ୟାନୁବାଦିତ



ପ୍ରକାଶକ—ଶ୍ରୀ ତ୍ରନାଥ ସାହୁ

**ସନ୍ନ୍ୟାସୀ ପୁସ୍ତକାଳୟ**

ମୂଲ୍ୟ ଦୁଇଅଣା

ଓଁ ସୂର୍ଯ୍ୟାୟ ନମଃ

ବ୍ରହ୍ମାଣ୍ଡ ପୁରାଣୋକ୍ତ

# ସମ୍ବର ଦଶମୀ ବ୍ରତକଥା

ଏକ ଦିନକର ସୂତମୁନି ସମ୍ବର ଦଶମୀ ବ୍ରତ କଥା ଶୌନକଙ୍କୁ ପଚାରିବାରୁ ଶୌନକ ମୁନି କହିଲେ —"ହେ ସୂତମୁନି ! ସମ୍ବର ଦଶମୀ ବ୍ରତ ବୋଲି ଏକ ପ୍ରସିଦ୍ଧ ବ୍ରତଅଛି, । ସେ ବ୍ରତ କଲେ ସିଦ୍ଧି ଲାଭ ହୁଏ ନାରୀମାନଙ୍କର ସୌଭାଗ୍ୟ ଲକ୍ଷ୍ମୀ ବୃଦ୍ଧି ହୁଏ । ସକଳ ମନୋରଥ ସିଦ୍ଧି ହୁଏ । ଅପୁତ୍ରିକମାନେ ପୁତ୍ରଲାଭ କରନ୍ତି । ମୃତବତ୍ସା ନାରୀମାନେ ଫଳପ୍ରଦ ହୁଅନ୍ତି । ବାଞ୍ଛିତ ଫଳ ପ୍ରାପ୍ତ ହୁଏ ।" ଏପରି ବଚନ ଶୁଣି ସୂତ ମୁନି ପଚାରିଲେ ଏହି ବ୍ରତ କରି କେଉଁମାନେ କି ଫଳ ପାଇଥିଲେ ତାହା ମୋତେ କହନ୍ତୁ । ଶୌନକ କହିଲେ-ଶୁଣିବା ହୁଅନ୍ତୁ । ଏକ ଦିନକର ମୁନିକୁଳ-ମୁକୁଟ ଋଷି ନାରଦ ମୁନି ଦ୍ୱାରକାକୁ ଶୁଭାଗମନ କରି କୃଷ୍ଣ ରୁକ୍ମିଣୀଙ୍କ ନିକଟରେ ପ୍ରବେଶ ହେଲେ । ଏ ସମୟେ, ରୁକ୍ମିଣୀ ଦେବୀ ନାରଦ ଋଷିଙ୍କି ଅର୍ଘ୍ୟ ଦେଇ ଉତ୍ତମ ରୂପେ ପୂଜା-କଲେ । ରୁକ୍ମିଣୀଙ୍କ ଭକ୍ତି ଦେଖି ଆସନ ଗ୍ରହଣ କରି, ରୁକ୍ମି-ଣୀଙ୍କ କୃଶ କଳେବର, ଲୋତକ ପୂର୍ଣ୍ଣ ନୟନ, ଦୀନ ବଦନ ଏବଂ ଅବସ୍ଥା ଭାବ ଦେଖି ମୁନି ରୁକ୍ମିଣୀଙ୍କି ପଚାରିଲେ— "ହେ କୃଷ୍ଣ ପ୍ରିୟବତୀ ! ତୁମ୍ଭେ ଏତେ ଦୁଃଖରେ କାହିଁକି କାତର ହେଉଛ, ତାହା ମୋତେ କହ ।" ନାରଦଙ୍କ ବଚନ ଶୁଣି ରୁକ୍ମିଣୀ କହିଲେ,-ହେମୁନିବର ମଦନଠାରୁ ଅଧିକ ସୁନ୍ଦର ମୋର କୁମର ଜାତ ହେଲା । ସେଶ୍ରୀକୃଷ୍ଣଙ୍କ ଅନୁରୂପ ସକଳଗୁଣ

ମୋହିତ କରେ । ସୁତରାଂ ସେଦିନରୁ ସେହି ନୃପମାନଙ୍କୁ କୌଣସି ରାକ୍ଷସ ହରଣ କରି ନେଲା । ସେ ହେତୁରୁ ଅତି ଦୀନା ଦୁଃଖିତା ହୋଇଅଛୁ ।" ଏହାଶୁଣି ସୁରକୁଳ ପୂଜିତ ନାରଦ ମୁନିବର ସ୍ଥିତ ଭାବନା କରି କହିଲେ,—"ହେ ବିଦର୍ଭ ରାଜକନ୍ୟା, ଶୁଣ । ଯେଉଁ କାମନାରେ ଦେବଙ୍କର ପୂଜା କଲେ ସଫଳ ଫଳ ଲାଭ ହୁଏ, ତୁମ୍ଭେ ସେହି ଲକ୍ଷ୍ମୀନାରାୟଣଙ୍କ ବ୍ରତକର, ସତ୍ୱର ଦୁର୍ଲଭ ସୁତ ଅବଶ୍ୟ ଲଭିବ ।" ଏହାଶୁଣି ରୁକ୍ମିଣୀ କହିଲେ,—"ହେ ମୁନିବର, ସୁଖପ୍ରଦ ବ୍ରତ ସନ୍ଦେହ ନରଖି କେଉଁ ଦେବତା ଅର୍ଚ୍ଚନ ନିୟମ, ସେଥିରେ କି ଫଳ ଲଭି-ହେବ, ତାହା ମୋଠାରେ ଯେବେ ତୁମ୍ଭର ଅନୁଗ୍ରହ ଅଛି, ଏକଥା ଉତ୍ତମ ରୂପେ କହନ୍ତୁ ।" ଏହାଶୁଣି ନାରଦ କହିଲେ,-"ଅର୍କକ୍ଷେତ୍ରରେ ଗୌତମ ନାମେ ଏକ ବିପ୍ର ଥିଲେ । ତାହାଙ୍କ ପତ୍ନୀ ମହାଭାଗୀ ପଦ୍ମମୁଖୀ । ସୁଧାକରପରି ତାଙ୍କର ତିନୋଟି ପୁତ୍ର ଜାତ ହୋଇ ନାଶ ହୋଇଗଲେ । ଅତଏବ ଦୁଃଖରେ ଚିନ୍ତାମଗ୍ନ ହୋଇ ବିପ୍ର ରମଣୀ ଥାଏ । ସେ ଦିନେ ତାର ପତିଙ୍କି ପଚାରିଲେ,—"ହେ ନାଥ, ଏତେ ଦୁଃଖ ସହିବା ଅକାରଣ ।" ପ୍ରିୟତମା ପତ୍ନୀର ଦୁଃଖ ଦେଖି ଦ୍ୱିଜପ୍ରବର କହିଲେ "ହେ କମଳବଦନା, ଦିବାକର ପ୍ରୀତିକାରକ ହେବାର ଯତ୍ନ-କର ।" ଗୌତମ ବିପ୍ରଙ୍କଠାରୁ ଏମନ୍ତ ଶୁଣି ପତିଭକ୍ତି ପର-ାୟଣା ପଦ୍ମମୁଖୀ ଦିନକର ପ୍ରୀତି ଲଭିବା ମାନସରେ ଅତି କଷ୍ଟରେ ତପ ଆଚରିଲେ । ପଦ୍ମମୁଖୀର କଠୋର ତପ ଦେଖି ସପ୍ତ-ଅଶ୍ୱ-ବାହନ ଦିବାକର ତୁଷ୍ଟ ହୋଇ ସ୍ୱପ୍ନରେ କହିଲେ, "ତୁମ୍ଭର କଠୋର ତପସ୍ୟା ଦେଖି ଆମ୍ଭେ ସନ୍ତୁଷ୍ଟ ହେଲୁ ।

ନିଶ୍ଚୟ ତୁମ୍ଭର ସଫଳ ହେବ, ଅମ୍ଭ ବାକ୍ୟ ଗ୍ରହଣକର । ଅମ୍ଭଙ୍କୁ ପୂଜାକରି ଅମ୍ଭବ୍ରତ ଆଚରଣ କର । ପୌଷ ମାସ ଶୁକ୍ଳପକ୍ଷ ଦଶମୀରେ ଭକ୍ତି ମାନସରେ ପ୍ରଭାତରୁ ଉଠି ବିଧି ରୂପେ ସ୍ନାନ ସାରି ମୋର ଉଦୟ ବେଳରେ ସାତଗୋଟି ମଣ୍ଡଳ ନିର୍ମାଣ କରିବ । ତଣ୍ଡୁଳ, ଲିଆ, ଗୁଡ, ନାରିକେଳ, କଦଳୀ ମିଶାଇ ମୋଦକ କରିବ । ଏପରି କରି ମୋହର ଆଗରେ ନୈବେଦ୍ୟ ରଖି ଶ୍ରଦ୍ଧାରେ ଉପହାର ଦେଇ ପୀଠ ସ୍ଥାପନ କରି ଭକ୍ତି ସହକାରେ ବିଧି ମତେ ପୂଜା କରିବ । ଅର୍ଘ୍ୟ, ଗନ୍ଧ, ପୁଷ୍ପ, ଧୂପ, ଦୀପ ଦେବ । ପ୍ରଥମ ପାତ୍ର ମୋଦକକୁ କାହା ସହିତ କଥା ଭାଷା ନ ହୋଇ ନିଜେ ଭୋଜନ କରିବ । ତାପରେ ମଧ୍ୟାହ୍ନରେ ଶ୍ରଦ୍ଧା ଭକ୍ତିମତେ ବିଧି ଅନୁସାରେ ସାତ ମଣ୍ଡଳରେ ନୈବେଦ୍ୟ ରଖି ପ୍ରଭାତ ବିଧି ପରି ପୂଜା କରିବ ।

ପୂଜାମନ୍ତ୍ର—

ଓଁ ଶ୍ରୀ ସୂର୍ଯ୍ୟନାରାୟଣାୟ ସ୍ୱାହା ।

ଭକ୍ତି ମାନସରେ ଅର୍ଘ୍ୟ ଦେଇ, ଅଳତି ବଳାଇବ, ନମସ୍କାର କରି ସ୍ତୁତି କରିବ,—"ହେ ଛାୟା ମାୟା ରମଣ, ଆପଣଙ୍କୁ ଅର୍ଘ୍ୟ ପ୍ରଦାନ କରୁଛି, ଗ୍ରହଣ କରନ୍ତୁ । ଅଳତି ଗ୍ରହଣ କରନ୍ତୁ ।"

ସେ ପ୍ରକାରେ ସନ୍ଧ୍ୟାରେ ବଜ୍ର ମହାକାଳୀ ପୂଜା କରିବ । ଶ୍ରଦ୍ଧା ଭକ୍ତିରେ ବ୍ରତ ଆଚରିବ । ହେ ଦେବୀ, ଏ ପ୍ରକାରେ ବ୍ରତକଲେ ଜନ୍ମ ହେବା ପୁତ୍ର ଓ ଥିବା ପୁତ୍ରମାନେ ଅତି ସୁଖରେ ରହିବେ । ଏ ବ୍ରତ ବିଧାନ ଦିବାକରଙ୍କଠାରୁ ସ୍ୱପ୍ନରେ ଶୁଣି ପଦ୍ମମୁଖୀ ବ୍ରତ କରି ପୁନି ଧର୍ମଦଳଭ କଲେ । ହେ ବିଦର୍ଭ ସୁତା, ସେ ବ୍ରତ ସିଦ୍ଧିପ୍ରଦ ବ୍ରତ । ତୁମ୍ଭେ

ଅଚରଣ କର । ଶାସ୍ତ୍ର ପୁତ୍ର ଲାଭ ହେବ ଏବଂ ଅକାଳ ମୃତ୍ୟୁ ହେବନାହିଁ । ଏହା ରୁକ୍ମିଣୀଙ୍କି କହି, ନାରଦ ମୁନି ମନ ଯାନ ଚଢ଼ି ବିଦାୟ ହେଲେ । ରୁକ୍ମିଣୀ ଏକାଗ୍ର ମାନସରେ ବିଧି-ମତ ବ୍ରତ କଲେ । ବିଜୟୀ ବୀରବର ପ୍ରଦ୍ୟୁମ୍ନ ସମ୍ବର ଦୈତ୍ୟକୁ ଶମନପୁରକୁ ପ୍ରେରଣ କରି ବିମାନରେ ବସି ଶ୍ରୀକୃଷ୍ଣଙ୍କ ଅନ୍ତଃପୁରରେ ପ୍ରବେଶ ହେଲେ । ରୁକ୍ମିଣୀ ଏବଂ କୃଷ୍ଣ ପ୍ରଦ୍ୟୁମ୍ନଙ୍କୁ ଦେଖି ଅନ୍ଧ ଚକ୍ଷୁ ପାଇଲା ପରି ଆନନ୍ଦ ବାରିଧିରେ ମଜ୍ଜିଗଲେ । ପ୍ରଦ୍ୟୁମ୍ନ ସମ୍ବରାସୁରକୁ ବିନାଶ କରି ଗୃହକୁ ଆଗ-ମନ କଲା ଦିନୁ ସମ୍ବର ଦଶମୀ ବ୍ରତ ଜଗତରେ ବିଖ୍ୟାତ ହେଲା । ଏକାଗ୍ର ଚିତ୍ତରେ ଶ୍ରଦ୍ଧାବାନ ହୋଇ ବିଧି ଅନୁସାରେ ଏହି ବ୍ରତ କଲେ ସୌଭାଗ୍ୟବତୀ ଏବଂ ପୁତ୍ରବତୀ ହୋଇ ନାନା ସୁଖ ଭୋଗ କରି ଅତୈଶ୍ୱର୍ଯ୍ୟରେ କାଳଯାପନ କରେ । ସକଳ ସିଦ୍ଧି ଲାଭ କରେ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ମହାପୁରାଣେ ନାରଦ ରୁକ୍ମିଣୀ
ସମ୍ବାଦେ ସମ୍ବର ଦଶମୀ ବ୍ରତକଥା ସଂପୂର୍ଣ୍ଣ ।

ଦୀନ ହୀନ କଙ୍ଗାଳ ମୁଁ ଅଟେ ବହୁବର ।
ଷଣ୍ମହାନ୍ତି ସାହିରେ କରିଅଛି ଘର ॥
ବ୍ରହ୍ମକର୍ମ ନଜାଣି ମୁଁ ବ୍ରାହ୍ମଣ ହୋଇଛି ।
ନାମ ମୋ ଶ୍ୟାମସୁନ୍ଦର ଜଗତେ ବ୍ୟାପିଛି ।
ସତ ପଦ ଗନ୍ତାବୃତ ଗୋତ୍ର ଭରଦ୍ୱାଜ ।
ବୁଧ ଜନମାନେ ଏଥି ଦୋଷକୁ ନ ଖୋଜ ।



ବ୍ରହ୍ମପୁର ସନ୍ନ୍ୟାସି ପ୍ରେସ୍‌ରେ ଶ୍ରୀ ତ୍ରିନାଥ ସାହୁଙ୍କ ଦ୍ୱାରା ମୁଦ୍ରିତ ।

ସାବଧାନ ! ଠକାମି ପ୍ରତି !! ସାବଧାନ !!!

ପ୍ରିୟ ପାଠକବୃନ୍ଦ,

ବହୁଦିନଠାରୁ ଆମ୍ଭର ଏହି ସନ୍ନ୍ୟାସୀ ପୁସ୍ତକାଳୟଦ୍ୱାରା ପ୍ରକାଶିତ ହୋଇଥିବା ମାଷ୍ଟର ଲକ୍ଷ୍ମଣ ଦାସ କୃତ ଗୀତାଭିନୟ ନାଟକଗୁଡ଼ିକ, ବ୍ରହ୍ମପୁର ମାର୍ଥାସାହି ଶ୍ରୀଶ୍ରୀ ଗ୍ରାମଦେବତୀ ନାଟ୍ୟ-ମଣ୍ଡଳୀ ଦ୍ୱାରା କୃତିତ୍ୱ ସହ ଅଭିନୀତ ହୋଇ ବିକ୍ରୟ ହେଉଅଛି । କିନ୍ତୁ ଆଜିକାଲି କେତେକ ଲୋଭିବଣ୍ଟ ପୁସ୍ତକ ବିକ୍ରେତା କୌଣସି ନାଟ୍ୟମଣ୍ଡଳୀ ଦ୍ୱାରା ଅଭିନୀତ ନ ହୋଇଥିବା ନାଟକ-ଗୁଡ଼ିକ ପ୍ରକାଶ କରି, କାଚକୁ କାଞ୍ଚନ ବୋଲି ବିକ୍ରୟ କରୁ-ଛନ୍ତି । ଏଣୁ ଆଡମ୍ବରପୂର୍ଣ୍ଣ ବିଜ୍ଞାପନରେ ନ ଭୁଲି **ମାଷ୍ଟର ଲକ୍ଷ୍ମଣ ଦାସ** କୃତ ସର୍ବଜନ ପ୍ରଶଂସିତ ଓ ସ୍ୱର୍ଣ୍ଣ ରୌପ୍ୟାଦି ପଦକପ୍ରାପ୍ତ ନାଟକଗୁଡ଼ିକ କ୍ରୟ କରନ୍ତୁ ।

| | |
|---|---|
| ସ୍ୟମନ୍ତକମଣି ହରଣ ବା କୃଷ୍ଣାର୍ଜୁନ ଯୁଦ୍ଧ | ମୂଲ୍ୟ ଟ ୦ ୪୯ |
| ଭକ୍ତ ପ୍ରହଲ୍ଲାଦ ବା ହିରଣ୍ୟ ହିରଣାକ୍ଷ ବଧ | ମୂଲ୍ୟ ଟ ୦ ୬ |
| ସୀତା ବିବାହ ବା ପରଶୁରାମ ଦର୍ପଦଳନ | ମୂଲ୍ୟ ଟ ୦ ୬ |
| ନଳଦମୟନ୍ତୀ ବା ଶନି ଲକ୍ଷ୍ମୀ କନ୍ଦଳ | ମୂଲ୍ୟ ଟ ୦ ୬ |
| କୁରୁକ୍ଷେତ୍ର ବା ଅଭିମନ୍ୟୁ ବଧ | ମୂଲ୍ୟ ଟ ୦ ୪ |
| କୁରୁକ୍ଷେତ୍ର ବା କର୍ଣ୍ଣ ବଧ | ମୂଲ୍ୟ ଟ ୦ ୪ |
| ପରଶୁରାମ ମାତୃହତ୍ୟା | ମୂଲ୍ୟ ଟ ୦ ୪ |

ସହସ୍ରାର୍ଜୁନ ବଧ ବା ପରଶୁରାମ ବିଜୟ ( ଯନ୍ତ୍ରସ୍ଥ )

ଶିବାର୍ଜୁନ ଯୁଦ୍ଧ ବା ଅଗ୍ନିଙ୍କ ଶାପ ମୋଚନ ( ଯନ୍ତ୍ରସ୍ଥ )

ପ୍ରକାଶକ—ଶ୍ରୀ ଜଗନ୍ନାଥ ସାହୁ, ସନ୍ନ୍ୟାସୀ ପୁସ୍ତକାଳୟ, ବ୍ରହ୍ମପୁର